# ଆମ ପରିବେଶ



Digitized by PPRACHIN, SOA

ପ୍ରକାଶକ :

**ଶ୍ରୀ ରାଧାଶ୍ୟାମ ମହାନ୍ତ**

ସାଥୀ ମହଲ

ବିନୋଦ ବିହାରୀ, କଟକ-୭୫୩୦୦୨

ଗଣଶିକ୍ଷା ମୁଦ୍ରଣ :

୧୯୯୫

ମୁଦ୍ରଣ :

**ସତ୍ୟବ୍ରତ ପ୍ରେସ**

ପିଠାପୁର, କଟକ-୭୫୩୦୦୨

ମୂଲ୍ୟ : ଟ ୭-୫୦

Digitized by PPRACHIN, SOA

# ବାପା ବାହାରେ ପରିବେଶ ବୁଝାଇଲେ

ମଧୁ ଭାଙ୍କ ଗାଁ ସ୍କୁଲର ପଞ୍ଚମ ଶ୍ରେଣୀରେ ପଢେ । ସ୍କୁଲର ଖରା ଛୁଟି ହେଲା । ମଧୁ ଘରେ ଥାଏ । ସେ ଦିନ ଶନିବାର । ବାପା, ମଧୁକୁ କହିଲେ, "ତୁ ପରା କେଉଁଆଡ଼େ ବାହାରକୁ ବୁଲି ଯିବାକୁ କହୁଥିଲୁ ?" ମଧୁ ବାପାଙ୍କ ମୁହଁକୁ



ଚାହିଁ ରହିଲା । ବାପା କହିଲେ, "ମୁଁ ତତେ କାଲି ସକାଳୁ ଚିଲିକା ବୁଲାଇ ନେବ ଠିକ୍ କରିଛି । କାଲି ତ ରବିବାର । ମୋର କିଛି କାମ ନାହିଁ ।

Digitized by PPRACHIN, SOA

ମଧୁ କହିଲା, ବୋଉ ବି ଆମ ସାଙ୍ଗରେ ଯିବ । ବାପା କହିଲେ, "ହଁ, ତୋ ମନ କଥା ଜାଣି, ସେ କଥା ବି ମୁଁ ଠିକ୍ କରିଛି । ବୋଉ, ତୁ ଆଉ ମୁଁ ତିନି ଜଣ ଯିବା ।"

ମଧୁର ଆନନ୍ଦ କହିଲେ ନସରେ । ଚିଲିକା ଦେଖି ଯିବ ବୋଲି ତାକୁ ଶନିବାର ରାତିରେ ନିଦ ହେଲା ନାହିଁ ।

ରବିବାର ସକାଳୁ ସକାଳୁ ମଧୁ ଏବଂ ତା ବୋଉଙ୍କ ସାଙ୍ଗେ ବାପା ଚିଲିକା ଯିବାକୁ ବସ୍ ଧରିଲେ ।

ବାଲୁଗାଁ ୫ପି ବଡ଼ବଲ ଠାରେ ସେମାନେ ବସ୍‌ରୁ ଓହ୍ଲାଇଗଲେ । ସେଠାରୁ ଅଳ୍ପ କିଛି ବାଟ ଚାଲି ଚିଲିକା କୂଳରେ ପହଞ୍ଚିଲେ ।

ବଡକୂଳ ଠାରେ ଓଡ଼ିଶା ସରକାର ଗୋଟିଏ ହୋଟେଲ ତିଆରି କରିଛନ୍ତି । ସେଠାରେ ଜଣେ କର୍ମଚାରୀ ଆଥିନ୍ତି । ସେ ଚିଲିକା ଭିତରେ କାଳିଜାଈ ପାହାଡକୁ "ଲଞ୍ଚ୍"ରେ ଯିବା ପାଇଁ ଟିକଟ କରନ୍ତି ।

ପ୍ରଥମେ ବଡକୂଳ ଠାରେ ଚିଲିକା କୂଳକୁ ସେମାନେ ଗଲେ । ଚିଲିକାର ପାଣି ଦେଖି, ମଧୁକୁ ବଡ଼ ଖୁସି ଲାଗିଲା । ଯେଉଁ ଆଡ଼େ ଚାହିଁଲେ ପାଣି ଦିଶୁଛି । ପାଖରେ ଗୋଳମାଳ କିଛି ନାହିଁ । ସେଠାରେ ଚିଲିକା କୂଳରେ ବାଲି ଉପରେ ସେମାନେ ବସିଲେ ।

ମଧୁ କହିଲା, "ବାପା ଏଠାରେ କିଛି ଗୋଳମାଳ ନାହିଁ ? ଚିଲିକା ହ୍ରଦର ପାଣି ଦେଖା ଯାଉଛି । ମତେ ଏଠାରେ ଭାରି

Digitized by PPRACHIN, SOA

ଖୁସି ଲାଗୁଛି । ଏ ଜାଗା ଛାଡ଼ି ଯିବାକୁ ମୋର ମନ ହେଉ ନାହିଁ ।



ବାପା ହସିଲେ । କହିଲେ, "ଏଠାରେ ପରିବେଶ ଖୁବ୍ ଭଲ ଲାଗୁଛି । ସେଥିପାଇଁ ଯିବାକୁ ମନ ହେଉ ନାହିଁ ।"

ମଧୁ କହିଲା, "ପରିବେଶ କ'ଣ ବାପା ?" ବାପା କହିଲେ "ଏଇ ଯେ, ତୁ ଟିକିଏ ଆଗରୁ କହୁଥିଲୁ, ଏଠାରେ ତୋତେ ଗାଁର ଭଲ ଲାଗୁଛି । ଏଠାରେ ଶବ୍ଦ ନାହିଁ । ଗହଳି ନାହିଁ । ଆଗରେ ଚିଲିକା ହ୍ରଦ । ଏହି ସବୁ ହେଲା ପରିବେଶ ।"

Digitized by PPRACHIN, SOA

ମଧୁ କହିଲା, "ସତରେ ବାପା, ଏଠାରେ କିଛି ସମୟ ବସିଲେ, ମୁଁ ଅନ୍ୟ କଥା ସବୁ ଭୁଲି ଯାଉଛି । ମୋ ମନରେ ବହୁତ ଶାନ୍ତି ଆଉ ଆନନ୍ଦ ଆସୁଛି ।"

ବାପା କହିଲେ, "ଠିକ୍ । ପରିବେଶ ଶାନ୍ତ ଥିଲେ, ମନରେ ଆନନ୍ଦ ଆସେ ।

ତା'ପରେ ସେ କହିଲେ, "ତୋତେ ଆଜି ମୁଁ ଏହି ଚିଲିକାର ପରିବେଶ ବିଷୟରେ ଆଉ କିଛି କହୁଛି ।"

ମଧୁ ତାଙ୍କ ବାପାଙ୍କ ମୁହଁକୁ ଚାହିଁ ରହିଲା । ମଧୁର ମା' ସେଠାରେ ବସି ବାପା ପୁଅଙ୍କର କଥାବାର୍ତ୍ତା ଶୁଣୁଥାନ୍ତି ।

ବାପା କହିଲେ, "ଏହି ଚିଲିକା ହ୍ରଦର ପରିବେଶ, ଆମ ଦେଶର ରାଧାନାଥ ରାୟଙ୍କୁ ବହୁ ଆନନ୍ଦ ଦେଇଥିଲା । ରାଧାନାଥ ଏହି ଚିଲିକା ବିଷୟରେ ଗୋଟିଏ ବଡ ପଦ୍ୟ ଲେଖିଥିଲେ । ସେହି ଚିଲିକା ପଦ୍ୟ ଆମ ଓଡ଼ିଆ ସାହିତ୍ୟରେ ଗୋଟିଏ ଅମୂଲ୍ୟ ରତ୍ନ ?

ମଧୁ କହିଲା, "ମତେ ରାଧାନାଥ ରାୟଙ୍କ ବିଷୟରେ ଆଉ କିଛି କୁହ ।"

ବାପା କହିଲେ, ସେହି କଥା ପରା କହୁଛି । ଚିଲିକାର ପରିବେଶ ରାଧାନାଥଙ୍କୁ ଏତେ ଆନନ୍ଦ ଦେଇଥିଲା ଯେ, ସେ ତାଙ୍କର ଚିଲିକା ପଦ୍ୟରେ ଲେଖିଛନ୍ତି—"ମୋର ମନଥିଲା, ମୁଁ ଏଇ ଚିଲିକା କୂଳରେ ମୋର ଶେଷ ଜୀବନ କଟାଇଥାନ୍ତି । ମାତ୍ର ତାହା ହୋଇପାରୁ ନାହିଁ । ମତେ ପୁଣି ସଂସାରର ଜଞ୍ଜାଳ ଭିତରକୁ ଚାଲି ଯିବାକୁ ପଡୁଛି ।"

Digitized by PPRACHIN, SOA

"ରାଧାନାଥ ଏକଥା କାହିଁକି ଲେଖିଥିଲେ ଜାଣୁ ? ସେ ଥିଲେ ଶିକ୍ଷା ବିଭାଗର ଜଣେ କର୍ମଚାରୀ । ତେଣୁ ସେ ତ ତାଙ୍କ ଚାକିରୀ ଛାଡ଼ି ଚିଲିକା କୂଳରେ ରହି ପାରିବେ ନାହିଁ ।"

ଝିଙ୍କିଏ ରହି ବାପା କହିଲେ, "ରାଧାନାଥ ରାୟ, ଆମ ଓଡ଼ିଆ ସାହିତ୍ୟର ଜଣେ ବଡ଼ କବି । ଚିଲିକାର ପରିବେଶ ତାଙ୍କୁ ଦିନେ ଅତି ମୁଗ୍‌ଧ କରିଥିଲା । ସେ ଚିଲିକା ବିଷୟରେ ଗୋଟିଏ ବଡ଼ ପଦ୍ୟ ଲେଖିଥିଲେ ।"

ମଧୁ କହିଲା, ତାହା ହେଲେ ବାପା ପରିବେଶ, ଏତେ ବଡ କାମ କରିପାରେ । ଜଣଙ୍କୁ ବଡ କବି କରି-ପାରେ ।"

ମଧୁର ବାପା କହିଲେ, "ଜଣେ ଜଣେ ମନୁଷ୍ୟ ଏହି ଭଲ ପରିବେଶରେ ଅନେକ ସାହିତ୍ୟ ଲେଖିଅଛନ୍ତି ।"

ଝିଙ୍କିଏ ରହି ବାପା କହିଲେ, "ହଁ ଏହି ଚିଲିକାକୁ ଦେଖି ମୋର ଆଉ ଗୋଟିଏ କଥା ମନେ ପଡ଼ୁଛି । ଆମ ଓଡ଼ିଶାର ଗୋପବନ୍ଧୁ ଦାସଙ୍କ ନାମ ଶୁଣିଥିବ ।"

ମଧୁ କହିଲା, "ହଁ ଆମେ କ୍ଲାସରେ ଶୁଣିଛୁ । ଗୋପ-ବନ୍ଧୁ ଆମ ଓଡ଼ିଶାର ଅନେକ ଉପକାର କରିଥିଲେ । ଓଡ଼ିଶାରେ ନଈ ବଢ଼ି ହୋଇଥିଲା ବେଳେ, ସେ ଚୁଡ଼ା ଚାଉଳ ନେଇ ଲୋକଙ୍କ ଭିତରେ ବାଣ୍ଟିଥିଲେ ।"

ବାପା ହସି ହସି କହିଲେ, "ତୁ ଠିକ୍ ଜାଣିଛୁ । ଗୋପବନ୍ଧୁ ଥିଲେ ଆମ ଓଡ଼ିଶାର ଦରିଦ୍ରର ବନ୍ଧୁ ।

Digitized by PPRACHIN, SOA

ସେହି ଗୋପବନ୍ଧୁଙ୍କ କଥା କହୁଛି । ଆମ ଦେଶରେ ଯେତେବେଳେ ସ୍ୱାଧୀନତା ଆନ୍ଦୋଳନ ଦେଖା ଦେଇଥିଲା, ସେତକ ବେଳେ ଗୋପବନ୍ଧୁଙ୍କୁ ବ୍ରିଟିଶ୍ ସରକାର ବନ୍ଦୀ



କଲେ । ବନ୍ଦୀ କରି, ଗୋପବନ୍ଧୁଙ୍କୁ ରେଲ ଗାଡ଼ିରେ ବସାଇ ବ୍ରହ୍ମପୁର ଜେଲକୁ ନିଆଯାଇଥିଲା ।"

ମଧୁ ପଚାରିଲା, "ବ୍ରହ୍ମପୁର କେଉଁଠି ବାପା ?"

ବାପା କହିଲେ, "ଏହି ଠାରୁ ଆଉ କିଛି ଦୂର ଗଲେ ବ୍ରହ୍ମପୁର ପଡ଼ିବ ।"

ମଧୁ କହିଲା, "ତା' ପରେ କ'ଣ ହେଲା ?"

ବାପା କହିଲେ, "ଏଇ ବାଟେ ତ ଗୋପବନ୍ଧୁ ରେଲ ଗାଡ଼ିରେ ଗଲେ । ସେ 'ରେଲ ଉପରେ ଚିଲିକା ଦର୍ଶନ' ପଦ୍ୟ ଲେଖିଥିଲେ । ସେଥିରେ ସେ ରେଲ ଗାଡ଼ିକୁ କହୁଛନ୍ତି— ରେ ରେଲଗାଡ଼ି, ତୁ ଏଇ ଚିଲିକା କୂଳରେ ଦଣ୍ଡେ ରହି । ମୁଁ ଚିଲିକାର ଶୋଭା ଦେଖେ ।"

Digitized by PPRACHIN, SOA

ମଧୁ ପଚାରିଲା, ଗୋପବନ୍ଧୁ ଦାସଙ୍କୁ ମଧ୍ୟ ଏହି ଚିଲିକା ହ୍ରଦ ଏତେ ଆନନ୍ଦ ଦେଇଥିଲା !"

"ସବୁଠାରେ ତ ଏହି ପରିବେଶ ଏପରି ଆନନ୍ଦ ଦେଉଥିବ ।"

ବାପା ହସିଲେ, କହିଲେ, ଠିକ୍ ପଚାରିଛୁ । ଏହି ଶାନ୍ତ ଓ ଆନନ୍ଦର ପରିବେଶରେ ଦେଶବିଦେଶର ଅନେକ ସାହିତ୍ୟ ଲେଖା ହୋଇଛି । ଅନେକ କବି ଓ ଲେଖକ ଦେଖାଦେଇଛନ୍ତି । ସେଥିପାଇଁ ତ ଅନେକ ସମୟରେ ଲେଖକ ମାନେ, ଘରଦ୍ୱାର ସଂସାର ଜଞ୍ଜାଳଠାରୁ ଦୂରକୁ ଯାଇ ଏହି ଭଳି ଶାନ୍ତ ଥିବା ସ୍ଥାନରେ ଲେଖିଛନ୍ତି ।

ମଧୁ ବାପାଙ୍କ କଥା ମନଦେଇ ଶୁଣୁଥିଲା । ଏଣେ ଚିଲିକା ହ୍ରଦକୁ ଦେଖି ଅତି ଖୁସି ହେଉଥିଲା । ମଧୁ ପଚାରିଲା, "ଏହି ଭଳି ଆଉ କ'ଣ କେଉଁ କବି ଲେଖିଛନ୍ତି ?"

ବାପା ମଧୁକୁ ଚାହିଁଲେ । ଦେଖିଲେ ମଧୁର ଅନେକ ବିଷୟ ଜାଣିବାକୁ ମନ ଅଛି ।

ବାପା କହିଲେ, "ତୁ ରାମାୟଣ କଥା ଶୁଣିଥିବୁ ।"

ମଧୁ କହିଲା, "ହଁ ବାପା, ମୁଁ ଜାଣେ । ଦଶରଥଙ୍କର ଚାରି ପୁଅ ଥିଲେ । ରାମ, ଭରତ, ଲକ୍ଷ୍ମଣ, ଶତ୍ରୁଘ୍ନ । ବଡ ପୁଅ ରାମଙ୍କର ରାଜା ହେବାର କଥା । କିନ୍ତୁ ଦାସୀ ମନ୍ଥରାର କୌଶଳରେ ରାମ ଚଉଦ ବର୍ଷ ବନବାସ ଗଲେ । ଭରତ ଅଯୋଧ୍ୟାର ରାଜା ହେଲେ ।"

Digitized by PPRACHIN, SOA

ବାପା ହସିଲେ । କହିଲେ, "ତୁ ଠିକ୍ କହୁଛୁ । ମାତ୍ର ଏଇ ରାମାୟଣ କିଏ ଲେଖିଛନ୍ତି, ଜାଣୁ ?"

ମଧୁ କହି ପାରିଲା ନାହିଁ ।

ବାପା କହିଲେ, "ରାମାୟଣ ଲେଖିଛନ୍ତି ବାଲ୍ମୀକୀ । ବାଲ୍ମୀକୀ, ଏହିଭଳି ଏକ ଶାନ୍ତ ପରିବେଶରେ ରାମାୟଣ ଲେଖା ଆରମ୍ଭ କରିଥିଲେ । ଗଙ୍ଗାନଦୀ କୂଳ । ନଦୀ କୂଳରେ ଅନେକ ବୃକ୍ଷ ଲତା । ଏହି ଭଳି ଏକ ଶାନ୍ତ ସୁନ୍ଦର ପରିବେଶରେ ବାଲ୍ମୀକୀ ରାମାୟଣ ରଚନା କରିଥିଲେ । ଆଉ ତୁ ଜାଣୁ ରାମାୟଣ, ଆମ ଦେଶ ଭାରତର ଏକ ମୂଲ୍ୟବାନ ଗ୍ରନ୍ଥ ।"

ମଧୁକୁ ବାପାଙ୍କ କଥା ବଡ଼ ଭଲ ଲାଗିଲା । ସେ ଆଗ୍ରହୀ ହୋଇ ଆହୁରି ଅଧିକ ବିଷୟ ଶୁଣିବା ପାଇଁ ଚାହିଁ ରହିଲା ।

ବାପା କହିଲେ, "ଏହି ପରିବେଶ କେବଳ ବଡ ସାହିତ୍ୟକ ମାନଙ୍କୁ ସୃଷ୍ଟି କରି ନାହିଁ । ଏହି ଭଳି ଶାନ୍ତ ପରି-ବେଶରେ ମନୁଷ୍ୟ ଅଶେଷ ଜ୍ଞାନ ଲାଭ କରିଛି ।"

ଟିକିଏ ରହି ବାପା ପଚାରିଲେ, "ତୁ ବୁଦ୍ଧଦେବଙ୍କ ନାମ ଶୁଣିଥିବୁ ?"

ମଧୁ କହିଲା, "ହଁ ବାପା । ବୁଦ୍ଧଦେବ ବୌଦ୍ଧଧର୍ମ ପ୍ରଚାର କରିଥିଲେ ।"

ବାପା କହିଲେ, "ମୁଁ ସେହି ବୁଦ୍ଧଦେବଙ୍କ କଥା କହୁଛି ଶୁଣ ।"

Digitized by PPRACHIN, SOA

ବାପା ଆରମ୍ଭ କଲେ, "ବୁଦ୍ଧଦେବ" ସଂସାରର ଦୁଃଖ ଦେଖି, ଦିନେ ରାତରେ ଘର ଛାଡ଼ି ଚାଲି ଯାଇଥିଲେ । ବୋଧ ଗୟାଠାରେ ସେ ଗୋଟିଏ ବୃକ୍ଷ ମୂଳେ ତପସ୍ୟାରେ ବସି



ରହିଲେ । ଏହି ସ୍ଥାନଟିର ପରିବେଶ ଶାନ୍ତ ଥିଲା । ଚତୁର୍ଦ୍ଦିଗ ନୀରବ ଥିଲା । ଏହି ପରିବେଶରେ, ବୁଦ୍ଧଦେବ ଜ୍ଞାନ ଲାଭ କରିଥିଲେ । ଏହି ତପସ୍ୟା ପରେ ସେ ତାଙ୍କର ବୌଦ୍ଧଧର୍ମ ପ୍ରଚାର କରିଥିଲେ ।"

ମଧୁ ପଚାରିଲା, "ତେବେ ତ ଏହି ପରିବେଶରେ ମନୁଷ୍ୟ ସବୁ କିଛି ବଡ଼ କାମ କରିପାରନ୍ତି ।"

ବାପା କହିଲେ, "ହଁ ପୁଅ । ପରିବେଶ ମନୁଷ୍ୟକୁ ଗଢ଼େ । ପରିବେଶ ଭଲ ହେଲେ ମନୁଷ୍ୟ ଭଲ ହୁଏ ।

Digitized by PPRACHIN, SOA

ପରିବେଶ ଭଲ ନ ହେଲେ, ମନୁଷ୍ୟ ଭଲ ହୋଇପାରେ ନାହିଁ । ସେଥିପାଇଁ ଭଲ ପରିବେଶରେ ରହିବାକୁ ଉଦ୍ୟମ କରିବା ଉଚିତ ।

ମଧୁ କହିଲା, "ସତ କଥା ବାପା । ଆମ୍ଭେମାନେ ଏହି-ପରି ମନ୍ଦିରେ ମନ୍ଦିରେ ବୁଲି ଆସିଲେ, ପରିବେଶ ବିଷୟରେ ଅନେକ କଥା ଜାଣିବୁ ।

ବାପା ହସିଲେ, କହିଲେ, "ତୁ ବଡ଼ ହେଲେ ଏହି ବିଷୟରେ ଅନେକ କଥା ଜାଣିବୁ ।

ଏତିକି ବେଳେ, ଲଞ୍ଚ କଥା ବୁଝୁଥିବା କର୍ମଚାରୀ ପଚାରିଲେ, "ଆଉ କିଏ ଯାତ୍ରୀ କାଳିଜାଇ ଯିବେ । ଲଞ୍ଚ ଛାଡ଼ିବ ।"

ବାପା ଯାଇଁ ବୋଉ, ମଧୁ ଓ ତାଙ୍କ ପାଇଁ ତିନିଖଣ୍ଡ ଟିକେଟ ଆଣିଲେ । ତିନିଜଣ ଲଞ୍ଚରେ ବସି କାଳିଜାଇ ବାହାରିଲେ ।

ଲଞ୍ଚ ଛାଡ଼ିଲା, ମଧୁ ସେ ପର୍ଯ୍ୟନ୍ତ ଲଞ୍ଚରେ ବସିନଥିଲା, ସେ ରେଳଗାଡ଼ି ଓ ମଟରରେ ବସିଥିଲା । ଲଞ୍ଚରେ ତାକୁ ଖୁବ୍ ଆନନ୍ଦ ଲାଗିଲା । ଲଞ୍ଚ ଚାଲିଲା ବେଳେ ମଧୁ ତା'ର ମାଆକୁ ଚିଲିକାର ପାଣି ଓ ପାଣି ଉପରେ ଉଡ଼ୁଥିବା ପକ୍ଷୀକୁ ଦେଖାଉଥାଏ ।

Digitized by PPRACHIN, SOA

ପ୍ରାୟ ଘଣ୍ଟାଏ ପରେ, ଲଞ୍ଚ କାଳିକାଇ ପାହାଡରେ ଲାଗିଲା । ଲଞ୍ଚରୁ ଓହ୍ଲାଇ ସେମାନେ ପାହାଡ ଉପରକୁ ଗଲେ । ପାହାଡ଼ ଉପରେ କାଳିକାଇ ଠାକୁରାଣୀଙ୍କ ମନ୍ଦିର । ସେଠାରେ ଆଉ ଦୋକାନ ବଜାର ବେଶୀ ନାହିଁ ।

କେତୋଟି ଦୋକାନରେ ଚୁଡ଼ା କଦଳୀ ଅନ୍ୟ ଫଳ ଓ ଅନ୍ୟ କେତୋଟିରେ କାଚର ଖେଳନା ଥିଲା । ମଧୁ ସେ ସବୁ କିଣିବା ପ୍ରତି ମନ ନଦେଇ ବାପାଙ୍କୁ କହିଲା "ବାପା, ଚାଲ ଚିଲିକା କୂଳକୁ ଫେରିଯିବା । ଆମେ ଯେଉଁଠାରେ ବସିଥିଲେ ସେଠାରେ ଆଉ କିଛି ସମୟ ବସିବା । ସେ ପରିବେଶ ମୋତେ ଭାରି ଭଲ ଲାଗୁଥିଲା ।"

ବାପା ହସିଲେ, କହିଲେ "ହଉ ଦେଖିବା" ।

ଏତିକି ବେଳେ ଲଞ୍ଚ ଫେରିବା ବେଳ ହେଲା । ବାପା ମା ଓ ମଧୁ ତିନିଜଣ ଲଞ୍ଚ ଚଢ଼ି ପୁଣି ଚିଲିକା କୂଳକୁ ଫେରି-ଆସିଲେ ।

ଲଞ୍ଚରୁ ଓହ୍ଲାଇ ମଧୁ କହିଲା, "ବାପା, ଏହିଠାରେ ଆଉ କିଛି ସମୟ ବସିବା ।"

ମାତ୍ର ବାପା କହିଲେ, ଆଜି ତ ଆମର ଫେରିବାର ସମୟ ହୋଇଗଲାଣି । ଶୀଘ୍ର ନଗଲେ, ରାତି ହୋଇଯିବ । ଚାଲ,

Digitized by PPRACHIN, SOA

ଆଜ ଗ୍ଭଲଯିବା । ପୁଣି ଆଉ କେବେ ସୁବିଧା ଦେଖି ଆସିବା । ନଚେତ୍ ତୋତେ ଅନ୍ୟ କେଉଁଠାକୁ ବୁଲାଇ ନେବ ।

ବାପା ବୋଉଙ୍କ ସଙ୍ଗେ ବାଧ୍ୟ ହୋଇ ମଧୁ ଫେରି ଆସିଲା । ତା'ର ଫେରି ଆସିବାକୁ ଆଦୌ ମନ ନଥିଲା । ଫେରି ଆସିଲାବେଳେ ସେ କହିଲା, "ମୁଁ ଆଜି ପରିବେଶ ବିଷୟରେ କିଛି ଜାଣିଲି ।"

—*—

Digitized by PPRACHIN, SOA

# ମା' ଘର ଭିତରେ ପରିବେଶ ବୁଝାଇଲେ

ମଧୁର ଖରା ଛୁଟି ଚାଲିଥାଏ । ମଧୁର ବାପା ସରକାରୀ କାମରେ ଗାଆଁ ବାହାରକୁ ଯାଇଥାନ୍ତି । ସେଦିନ ମଧୁର ମା ସକାଳୁ ଉଠି ଦେଖିଲେ, ଘରର ଚାରିପଟେ ଅଳିଆ ଜମି



ଗଲାଣି । ମା' କହିଲେ, "ମଧୁ, ଦେଖିଲୁଣି ! ଘର ପଛପଟେ କେତେ ଅଳିଆ ଜମିଗଲାଣି । ବାପା ଥିଲା ବେଳେ ତ, ଏତେ କାମ ଯେ, ମୋଟରୁ ସମୟ ମିଳୁ ନାହିଁ । ଆଜି ସେ ବାହାରକୁ

Digitized by PPRACHIN, SOA

ଯାଇଛନ୍ତି । ମୁଁ ଆଜି ଘର ଚାରିପଟରେ ସବୁ ଅଳିଆ ସଫା କରିବି ।"

ଏହା କହି ମଧୁର ମା' ଗୋଟିଏ ଟୋକେଇ ଓ ଝାଡୁ ହାତରେ ଧରି ବାହାରିଲେ ।

ମଧୁ କହିଲା, "ମା' ମୁଁ ବି ତୁମ ସାଙ୍ଗେ କାମ କରିବି ।"

ମା' ହସିଲେ, କହିଲେ "ତୁ ପାରିବୁ ? ହଉ ଆ ।" ଏହା କହି ସେ ଘରର ବାରିପଟକୁ ଚାଲିଗଲେ । ମଧୁ ଗୋଟିଏ ଛୋଟ ଟୋକେଇ ଧରି ତାଙ୍କ ପଛେ ପଛେ ବାରିକୁ ଗଲା ।



ମା' କହିଲେ, "ଆ ଶୀଘ୍ର ପରିଷ୍କାର କରିଦେବା ।"

ମଧୁ କହିଲା, "ଚାଲ ।"

Digitized by PPRACHIN, SOA

ଏହା କହି ମଧୁ, ମାଆଙ୍କ ସାଙ୍ଗେ କାମରେ ଲାଗିଗଲା ।

ଘରର ପଛ ପଟଟାର ଅଧେ ସଫା କରି ମା' କହିଲେ, 'ମଧୁ ତୋତେ ସେଦିନ ବାପା, ବାହାରେ ପରିବେଶ କଥା ବୁଝାଉ ଥିଲେ । ମୁଁ ଆଜି ତୋତେ ଘର ଭିତରେ ପରିବେଶ କଥା ବୁଝାଇବି ।"

ମଧୁ ପଚାରିଲା, ଘର ଭିତରେ ପୁଣି ପରିବେଶ କ'ଣ ମା ?"



ମା' କହିଲେ, ତୁ ସେଇ କଥା ପଚାରିବୁ ବୋଲି ମୁଁ ଜାଣିଥିଲି । ଆଚ୍ଛା ତୁ ନିଜେ କହନା, ଏଇ ଅଳିଆ ଗୁଡ଼ା ଥିଲାବେଳେ ତତେ କପରି ଲାଗୁଥିଲା ।"

Digitized by PPRACHIN, SOA

ମଧୁ ନାକରେ ହାତ ଦେଇ କହିଲା "ଛି, ଛି, ମା' ଏତେ ଅପନା । ଏଠି ଏତେ ଗନ୍ଧ ? କ'ଣ କହିବ ମା ।"

ମା' କହିଲେ, "ସତ କହିଲୁ ମଧୁ । ତୋର ପାଠ ପଢାରେ ଆଗ ମନ ଲାଗୁ ଥିଲା ନା ?

ମଧୁ କହିଲା, "ନା ମା' । ତୁମେ ଠିକ୍ କହୁଛ । ଏ ଅଳିଆ ଗୁଡା ଏତେ ଖରାପ ଲାଗୁଥିଲା ?

ମା' କହିଲେ, "ଏଥର ତତେ କପରି ଲାଗୁଛି ?"

ମଧୁ କହିଲା, "କେତେ ଭଲ ଲାଗିଲାଣି । ପୁଣି ଟିକିଏ ରହି ପଚାରିଲା, "ମା' ଆଉ ଯେତେକ ରହିଲା ସଫା କରିବା ନାହିଁ ?"

ମାଆ କହିଲେ, "ସବୁ ସଫା କରିବା । ତା'ପରେ ବାହାର ପଟ ବଗିଚାକୁ ଯିବା । ବଗିଚା ସଫା କରିବା, ବଗିଚାର ଫୁଲ ଗଛ ମୂଳେ ପାଣି ଦେବା "

ମଧୁ ଖୁସୀ ହୋଇ କହିଲା "ହଁ ମା' ଫୁଲଗଛରେ ପାଣି ଦେଲେ ଫୁଲ ଫୁଟିବ । ଆମ ଶିକ୍ଷକ ପରା କହୁଛନ୍ତି ?"

ମାଆ ହସିଲେ, କହିଲେ, "ଶିକ୍ଷକ ଠିକ୍ କହୁଛନ୍ତି । ଫୁଲ ଫୁଟିଲେ କ'ଣ ହେବ କହିଲୁ ।

ପୁଅ କହିଲା, "ଫୁଲ ଫୁଟିଲେ କେତେ ସୁନ୍ଦର ଦିଶିବ ! ଆମକୁ କେତେ ଭଲ ଲାଗିବ । ଆମ ମନ କେତେ ଭଲ ରହିବ ।"

Digitized by PPRACHIN, SOA

ମାଆ କହିଲେ ସେହି ହେଲା ପରିବେଶ କଥା । ବାପା ତୋତେ ସେଦିନ ବାହାରେ ପରିବେଶ କଥା ବୁଝାଉ ଥିଲେ । ଏହା ହେଲା, ଘର ଭିତରର ପରିବେଶ କଥା ।

ଘର ଭିତର ଗୃହପରିଷ୍ଟ ପରିଷ୍କାର ରହିଲେ, ପରିବେଶ ଭଲ ରହିବ । ବଗିଚାରେ ଫୁଲ ଫୁଟିଲେ, ପରିବେଶ ସୁନ୍ଦର ଦିଶିବ ।

ମଧୁ ଖୁସୀ ହୋଇ କହିଲା, ହଁ ମା' ପଢ଼ିବାକୁ ମନ ହେବ । ଖେଳିବାକୁ ମନ ହେବ ।"

ମା' କହିଲେ, ମୁଁ ପରା ସେହି ପରିବେଶ କଥା କହୁଛି । ସବୁ କଥାରେ ମନ ଲାଗିବ । ପରିବେଶ ଠିକ୍ ରହିଲେ, ସବୁ ଠିକ୍ ।

ଟିକିଏ ରହି ମା' ପଚାରିଲେ "କହିଲୁ ମଧୁ, ଘର ଗୃହପରିଷ୍ଟ ଅଳିଆ ଯେତେ ସବୁ ଆମେ ସଫା କରୁଛେ କାହିଁକି ?"

ମଧୁ କହିଲା । "ପରିବେଶ ପରିଷ୍କାର ରହିବ ବୋଲି ।"

ମା' ପଚାରିଲେ, "ପରିବେଶ ପରିଷ୍କାର ରହିଲେ କ'ଣ ହେବ ?"

ମଧୁ କହିଲା, "ମୁଁ ମନେ ରଖିଛି ମା' ସବୁ କାମରେ ମନ ଲାଗିବ ।"

Digitized by PPRACHIN, SOA

ମା' ହସିଲେ କହିଲେ, "ମୁଁ ଯେତକ କହୁଛି, ତୁ ସେତକ ମନେ ରଖିଛୁ । ହଉ, ମୁଁ ଆଉ କିଛି କହୁଛି । ତୁ ତାକୁ ବି ମନେ ରଖିବୁ ।"

ମା' କହିଲେ, "ଘର ଚାରିପାଖେ ଅଳିଆ ଥିଲେ, ପବନ ବୋହିଲା ବେଳେ ସେଥିରେ ଅଳିଆ ଉଡ଼ି ଆସିବ; ନାକ ବାଟେ ତା'ର ମଇଳା ଦେହ ଭିତରକୁ ଯିବ । ଏହା ଫଳରେ ଆମକୁ ଅନେକ ରୋଗ ହେବ ।

ମଧୁ କହିଲା, "ସତ କହିଲ ମା, ଏକଥା ଆମେ ବହିରୁ ପଢ଼ିଛୁ ।"

ମା' କହିଲେ, "ବହିରେ ଖାଲି ପଢ଼ିଲେ କ'ଣ ହେବ ! ତୁ ଏଠାରେ ଦେଖି କରି ସବୁ ଜାଣିଲେ ହବନା !"

ମଧୁ କହିଲା, "ହଁ, ମା, ମୁଁ ସବୁ ମନେ ରଖିଲି । ଆଜ ଠାରୁ ଆଉ ଭୁଲିବ ନାହିଁ ।"

ମା' କହିଲେ, "କ'ଣ ଜାଣିଲୁ ?"

ମଧୁ କହିଲା, "ଏହା ଘର ଭିତର ପରିବେଶ କଥା ମା' । ଘର ଚାରିପାଖ ଅଳିଆ ସଫା ନକଲେ, ଘର ଭିତର ସଫା ନକଲେ, କାମରେ ଆମର ମନ ଲାଗିବ ନାହିଁ । ଆଉ ଗଛ ପତ୍ର ଲଗାଇଲେ, ଗଛ ବଡ ହେଲେ, ଫୁଲ ଫୁଟିଲେ, ଘର ବାହାର ସୁନ୍ଦର ଦିଶିବ । ତା'କୁ ଦେଖି ମନ ଭଲ ରହିବ ।"

Digitized by PPRACHIN, SOA

ମା' କହିଲେ, "ଏତେବେଳକୁ ତୁ ଠିକ୍ ବୁଝିଲୁ । ସେ ଦିନ ବାପା ଚିଲିକା କୂଳକୁ ନେଇଥିଲେ । ଚିଲିକାର ପାଣି, ଉପରର ଆକାଶ ଏବଂ ହେଠାର ଶାନ୍ତ, ଏ ସବୁ ପରିବେଶ ଯେତେ ବଡ଼ ଭଲ ଲାଗିଲା, ଆଜ ମଧ୍ୟ ଘର ପରିଷ୍କାର ହେବା ଦ୍ୱାରା କେତେ ଭଲ ଲାଗିଲା । ବଗିଚାରେ ଫୁଲ ଫୁଟିଲେ ତୋତେ ଆହୁରି ସୁନ୍ଦର ଦିଶିବ । ମନ ଅଧିକ ଭଲ ରହିବ ।"

ମଧୁ କହିଲା, "ହଁ ମା' । ତୁମେ ମୋତେ ଘର ଭିତରେ ପରିବେଶ କଥା ବୁଝାଇଛ, ବାପା ଆସିଲେ ମୁଁ ତାଙ୍କ ଆଗରେ କହିବି ।"

ତା' ପରଦିନ ସକାଳୁ ବାପା ଘରକୁ ଫେରି ଆସିଲେ ।

ମଧୁ ବାପାଙ୍କୁ ଦେଖୁ ନଦେଖୁଣୁ ଖୁସୀ ହୋଇ କହିଲା, "ବାପା, ମୁଁ ଆଜି ପରିବେଶ ବିଷୟରେ ଆହୁରି କେତେ କଥା ଜାଣିଛି ।"

ବାପା ହସିଲେ । ପଚାରିଲେ, "କିଏ ଶିଖାଇଲା ? ତୋ ମା' ?"

ମଧୁ କହିଲା, ହଁ, ବାପା, ମା' ମତେ ଘର ଭିତରେ ପରିବେଶ କଥା ବୁଝାଇଛନ୍ତି । ତୁମେ ମୋତେ ବାହାରେ ପରିବେଶ କଥା ବୁଝାଉଥିଲ ।"

ତା' ପରେ ମଧୁ, ତା' ମାଆ ତାକୁ ପରିବେଶ ବିଷୟରେ ଯାହା କହିଥିଲେ, ସବୁ ଗୋଟି ଗୋଟି କରି କହିଲା ।

Digitized by PPRACHIN, SOA

ସବୁ ଶୁଣି ବାପା କହିଲେ, 'ଦେଖୁଛୁ, ଘର ଗୋଟାକଯାକ ଭିତର ବାହାର ଆଜି ବହୁତ ପରିଷ୍କାର ହୋଇଛି । ବହୁତ ଭଲ ଲାଗୁଛି ।''



ମଧୁ କହିଲା, 'ସବୁ ସେ ପରିବେଶ ଯୋଗେ ।''

ବାପା ମଧୁର କଥା ଶୁଣି ହସିଲେ, ଆଉ କିଛି ନ କହି ଅନ୍ୟ କାମରେ ଲାଗିଗଲେ ।

ମଧୁ ବଗିଚାକୁ ବୁଲି ପଳାଇଗଲା ।

—*—

Digitized by PPRACHIN, SOA

# ଶିକ୍ଷକ କ୍ଲାସରେ ପରିବେଶ ବୁଝାଇଲେ

ଖରା ଛୁଟି ପରେ ସ୍କୁଲ ଖୋଲିଗଲା । ପିଲାମାନେ ଛୁଟି ପରେ ଆସି ସ୍କୁଲରେ ଯୋଗ ଦେଲେ । ପୂର୍ବପରି ରୀତିମତ ପଢାପଢି ଚାଲିଲା ।



ସେଦିନ ସୋମବାର । ମଧୁ ଅନ୍ୟ ସାଙ୍ଗ ମାନଙ୍କ ସହିତ ତା' କ୍ଲାସକୁ ଯାଇଥିଲା । ସେ ପଞ୍ଚମ ଶ୍ରେଣୀରେ ପଢେ ।

Digitized by PPRACHIN, SOA

ପଞ୍ଚମ ଶ୍ରେଣୀର କ୍ଲାସ ଶିକ୍ଷକ ଆସି ପଚାରିଲେ "ଛୁଟି କିପରି କଟାଇଲ ।"

ମଧୁର ସାଙ୍ଗମାନେ କିଛି କହିବା ପୂର୍ବରୁ ମଧୁ ଉଠି ପଡ଼ି କହିଲା, " ଛୁଟିରେ ମୁଁ ଅନେକ କଥା ଶିଖିଛି ?"

ଶିକ୍ଷକ ପଚାରିଲେ, "ଅନେକ କଥା କ'ଣ ଶିଖିଲ ?"

ମଧୁ କହିଲା, "ମୁଁ ପରିବେଶ ବିଷୟରେ ଅନେକ କଥା ଜାଣିଛି ।"

ଶିକ୍ଷକ ମଧୁକୁ କହିଲେ, କିପରି ଜାଣିଲ ?"

ମଧୁ କହିଲା, ବାପା ମୋତେ ଚିଲିକା ହ୍ରଦ କୂଳକୁ ବୁଲାଇ ନେଇଥିଲେ । ସେଠାରେ ଚିଲିକାର ଶୋଭା ଓ ସେଠାକାର ଶାନ୍ତି, ଆମକୁ ବହୁତ ଆନନ୍ଦ ଦେଇଥିଲା । ସେ ପରିବେଶ ଛାଡ଼ି, ମୋର ଆସିବାକୁ ଆଦୌ ମନ ନଥିଲା ।"

ତା'ପରେ ମଧୁକୁ ତା' ବାପା ଯାହା ଯାହା କହିଥିଲେ, ମଧୁ ସବୁ ଗୋଟି ଗୋଟି କରି ତା'ର ଶିକ୍ଷକଙ୍କ ଆଗରେ କହିଲା ।

ଶିକ୍ଷକ କହିଲେ, "ଯାହା ହେଉ ତୁମେ ଅନେକ କଥା ଜାଣିଲ ।"

Digitized by PPRACHIN, SOA

ମଧୁ କହିଲା, "ସେତିକି ନୁହେଁ । ବାପା ଯାହା କହିଲେ, ସେ ହେଲା ବାହାରର ପରିବେଶ, ମାଉ ମା' ମୋତେ ଘର ଭିତରର ପରିବେଶ କଥା ମଧ୍ୟ ବୁଝାଇଛନ୍ତି ।"

ଶିକ୍ଷକ କହିଲେ, "କ'ଣ ବୁଝିଚ ?"

ମଧୁ କହିଲା, "ମୁଁ ବୁଝିଲି ଘର ବାହାର ପରିଷ୍କାର ରଖିଲେ ଆମ ଶରୀର ଭଲ ରହିବ । ଆମ ମନ ଭଲ ରହିବ । ସବୁ କାମ କରିବାକୁ ମନ ହେବ । ପୁଣି ଘରର ଆଗରେ ବଗିଚାକୁ ସୁନ୍ଦର କରି ପାରିଲେ, ଘରେ ବାହାର ସୁନ୍ଦର ଦେଖାଯିବ । ସେଠାରେ ବସିବାକୁ ଓ ବୁଲିବାକୁ ବହୁତ ମନ ହେବ ।

ଶିକ୍ଷକ କହିଲେ, "ଯାହା ହେଉ ମଧୁ ତୁମେ ଛୁଟି ଭିତରେ ଘର ଭିତର ଓ ବାହାରର ପରିବେଶ ବିଷୟରେ ଅନେକ ଜାଣିଛ ।

ଆଜି ମୁଁ କ୍ଲାସ୍‌ରେ ତୁମକୁ ସ୍କୁଲର ପରିବେଶ କଥା ବୁଝାଉଅଛି । ତୁମେମାନେ ମନ ଦେଇ ଶୁଣ ।

"ଦେଖ, ଘର ଭିତର ଓ ବାହାର ଯେପରି ପରିଷ୍କାର ରଖିବା ଆବଶ୍ୟକ, ସ୍କୁଲରେ ମଧ୍ୟ, କ୍ଲାସ ଗୁଡ଼ିକର ଭିତର ଏବଂ ବାହାର ପରିଷ୍କାର ରଖିବା ଉଚିତ୍ । କ୍ଲାସ ଭିତର ଓ ବାହାର ପରିଷ୍କାର ନ ରହିଲେ, ସେଠାରେ ଥିବା ମଇଳା, ପବନରେ ଆସିବ ଏବଂ ସେ ମଇଳା ନିଶ୍ୱାସ ବାଟେ ଦେଇ

Digitized by PPRACHIN, SOA

ଆସି ଶରୀର ଭିତରେ ପଶିବ । ତା' ଦ୍ୱାରା କ'ଣ ହେବ ବୁଝିଲ ?"



ମଧୁ ସଙ୍ଗେ ସଙ୍ଗେ ଉଠି ପଡ଼ି କହିଲା, "ରୋଗ ହେବ ।"

ଶିକ୍ଷକ କହିଲେ, "ହଁ, ସେଥି ପାଇଁ କ୍ଲାସ ଘର ସବୁ ଦିନ ପରିଷ୍କାର ହେଉଛି । ବାହାର ମଧ୍ୟ ପରିଷ୍କାର ରଖା ଯାଉଛି ।"

ଟିକିଏ ଭାବି ସେ କହିଲେ, "ଦେଖ ପିଲାମାନେ, ଆମ ସ୍କୁଲର ଚାରିପଟେ ଅନେକ ଗଛ ଲାଗିଛି । ଏ ସବୁ ଗଛ କାହିଁକି ଲାଗିଛି କହିଲ ?"

Digitized by PPRACHIN, SOA

ଜଣେ ଉଠି ପଡ଼ି କହିଲା, ଗ୍ଛାଇ ହେଉଛି । ଗଛ ଆମକୁ ଗ୍ଛାଇ ଦିଏ ।"

ଆଉ ଜଣେ କହିଲା, "ଗଛ ଆମକୁ ଫଳ ଦିଏ । ଆମ୍ବ, କଦଳୀ, ପଣସ—ଏମିତି କେତେ ଗଛରୁ ଆମ୍ଭେମାନେ ଫଳ ପାଉ ।"

ମଧୁ ଉଠି ପଡ଼ି କହିଲା, "ଗଛରୁ ଆମ୍ଭେମାନେ କାଠ ପାଉ । କାଠରେ ଟେବୁଲ, ଚୌକି, ଖଟ, ବେଞ୍ଚ ପ୍ରଭୃତି ତିଆରି ହୁଏ ।"

ଶିକ୍ଷକ କହିଲେ, "ପିଲ୍ମାନେ ତୁମେମାନେ ଯାହା କହିଲ, ସବୁ ଠିକ୍ । ମାତ୍ର ଏ ସବୁ ବ୍ୟତୀତ ଗଛ ଆମର ଏପରି ଏକ ଉପକାର କରେ, ଯାହା ଆମ୍ଭେମାନେ ଆଖିରେ ଦେଖି-ପାରୁ ନାହିଁ ।"

ମଧୁ ସଙ୍ଗେ ସଙ୍ଗେ ଉଠିପଡ଼ି କହିଲା "ତାହା କିପରି ଉପକାର ।"

ଶିକ୍ଷକ କହିଲେ, "ବୁଝାଇ ଦେଉଛି । ପବନ ଯେତେ-ବେଳେ ବହେ, ସେତେବେଳେ ପବନରେ ମଇଳା ଅଂଶ ମିଶି-କରି ଥାଏ । ମାତ୍ର ପବନ ଯେତେବେଳେ ଗଛ ଦେହ ଛୁଇଁ ଆସେ, ସେତେବେଳେ ପବନର ମଇଳା ଅଂଶ ଗଛର ଡାଳ ପତ୍ରରେ ଲ୍ଗି ରହେ । ଏହା ଫଳରେ, ପବନ ଗଛ ଦେହରେ ବାଜି, ପରିଷ୍କାର ହୋଇଯାଏ ।"

Digitized by PPRACHIN, SOA

ମଧୁ କହିଲା, "ଠିକ୍ ବୁଝି ହେଲା ନାହିଁ ।"

ଶିକ୍ଷକ କହିଲେ. "ବୁଝାଇ ଦେଉଛି । ତମେମାନେ ଘରେ ଦେଖିଥିବ, ମା' ତୁମର କ୍ଷୀର ଛାଣି କରି, ପାଣି ଛାଣି କରି ପିଇବାକୁ ଦିଅନ୍ତି । ଗଛ ସେହିପରି ଛଣାର କାମ କରେ । ପବନରେ ଯାହା ମଇଳା ଥାଏ, ତା ଗଛ ଦେହରେ ଲାଗି ରହିଯାଏ । ଏହା ଫଳରେ ପବନ ପରିଷ୍କାର ହୋଇଯାଏ । ସେହି ପରିଷ୍କାର ପବନ ଆମେ ନିଶ୍ୱାସରେ ନେଲେ, ଆମ ଶରୀର ଭଲ ରହେ ।"

ମଧୁ ପଚାରିଲା, "ଆମ ଘରେ ତ ଗଛ ସେହିପରି କାମ ଦେଉଥିବ ।"

ଶିକ୍ଷକ କହିଲେ, 'ନିଶ୍ଚୟ । ପବନ ତ ସବୁଠି ଏକା । ସ୍କୁଲ ପାଖ ଗଛରେ ପବନ, ଯେପରି ଛାଣି ହୋଇ ଆସିବ, ଘରର ଗଛରେ ମଧ୍ୟ ପବନ ସେହିପରି ଛାଣି ହୋଇ ଆସିବ" ।

ମଧୁ କହିଲା, ଏ କଥା ମୁଁ ଯାଇ ଆଜି ମା'ଙ୍କୁ କହିବି" ।

ଶିକ୍ଷକ କହିଲେ, ଦେଖ, ଘରେ ଖୁବ୍ କମ ଲୋକ ଅଛନ୍ତି । ଧରି ନିଅ ମଧୁ ଘରେ, ତାର ବାପା, ମା' ଓ ସେ । ସେହିପରି କାହା ଘରେ ପାଞ୍ଚ ଜଣ ବା ଦଶ ଜଣ ଥିବେ । ମାତ୍ର ସ୍କୁଲରେ ଆମେ ପିଲା ଓ ଶିକ୍ଷକ ମିଶି କେତେ ଜଣ ଅଛେ କହିଲ ?"

Digitized by PPRACHIN, SOA

ମଧୁ କହିଲା ଆମେ ତ.ବଡ଼ୁତ ଅଛେ ।"

ଶିକ୍ଷକ କହିଲେ ଆମେ ସମସ୍ତେ ମିଶି ବର୍ତ୍ତମାନ ଶହେ ଷାଠିଏ ଅଛେ । ପୁଣି ମଦିରେ ମଦିରେ ପିଲାଙ୍କ ସଂଖ୍ୟା ମଧ୍ଯ ବଢ଼ୁଛି । ତେଣୁ ଏତେ ପିଲାଙ୍କର ସ୍ୱାସ୍ଥ୍ୟ ପାଇଁ ଭଲ ପାଣି ଭଲ ପବନ ଦରକାର । ସେହି ହେତୁ ଆମ ସ୍କୁଲରେ ନଳକୂଅ ଦିଆଯାଇଛି, ଅତଏବ ପାଣିରେ କିଛି ଅସୁବିଧା ନାହିଁ । ସ୍କୁଲର ଚାରିପଟେ ଛେ ଥିବା ଦ୍ୱାରା ପବନ ପରିଷ୍କାର ହୋଇ ବହି ପାରୁଅଛି ।"



ମଧୁ ପଚାରିଲା ସେଥିପାଇଁ କ'ଣ ଆମ ସ୍କୁଲର ଚାରିପଟେ ଗଛ ଲଗା ଯାଇଛି ?"

Digitized by PPRACHIN, SOA

ଶିକ୍ଷକ କହିଲେ, "ହଁ, ତାହା ହେଉଛି ସବୁଠାରୁ ବଡ଼ କାରଣ।"

ଟିକିଏ ରହି ପୁଣି ଶିକ୍ଷକ ପଚାରିଲେ, "ଆଚ୍ଛା, କହିଲ ପିଲାଏ, ଆମ ଗାଁ ପାଖରେ ଯେଉଁ କାଚ କାରଖାନା ବସିଥିଲା, ତାହା କାହିଁକି ବନ୍ଦ ହୋଇଗଲା ?"

ମଧୁ କହିଲା, "ବାପା କହୁଥିଲେ, ସରକାର ବନ୍ଦ କରିଦେଲେ।"

ଶିକ୍ଷକ କହିଲେ, ତାହା ଠିକ୍ ଯେ, ମାତ୍ର ସରକାର କାହିଁକି ବନ୍ଦ କରିଦେଲେ ଜାଣ ? କାଚ କାରଖାନା ପାଖରେ ତ ଗୋଟିଏ ନଈଟିଏ । କାରଖାନାର ମଇଳା ପାଣି ସେହି ନଈ ପାଣିରେ ପଡ଼ିଲା । ଫଳରେ ନଈ ପାଣି ସବୁବେଳେ ଗୋଳିଆ ଅପରିଷ୍କାର ହେଲା ।

ଗାଁ ଲୋକେ ସେହି ପାଣିରେ ଗାଧୋଇଲେ । ପୁଣି କେହି କେହି ସେହି ପାଣିକୁ ପିଇବା ପାଣି ରୂପେ ବ୍ୟବହାର କଲେ । ଏହା ଫଳରେ ଗାଁ ଆ ଲୋକଙ୍କ ମଧ୍ୟରୁ ଅନେକ ଝାଡ଼ା ବାନ୍ତି ରୋଗରେ ପଡ଼ିଲେ । କେତେକ ରୋଗୀଙ୍କ ଠାରେ ଏହି ରୋଗ ବଡ଼ ଆକାର ଧାରଣ କରିଥିଲା । କେତେ ଲୋକ ରୋଗରେ ପଡ଼ି ମରିଗଲେ ।"

ମଧୁ କହିଲା, "ହଁ ଆମେ ଶୁଣିଛୁ, ସେହି ଗାଁ ଆରେ ବଡ଼ ଧରଣର ଝାଡ଼ା ବାନ୍ତି ରୋଗ ଦେଖା ଦେଇଥିଲା।"

Digitized by PPRACHIN, SOA

ଶିକ୍ଷକ କହିଲେ, "ଅପରିଷ୍କାର ପାଣି ଦେହକୁ ଗଲେ ଏହିପରି ରୋଗ ହୁଏ ।"

ମଧୁ ପଚାରିଲା "ଏଥିପାଇଁ କ'ଣ କାରଖାନା ବନ୍ଦ ହୋଇଗଲା ?"

ଶିକ୍ଷକ କହିଲେ, "ମୋର କଥା ଶେଷ ହୋଇ ନାହିଁ । କାରଖାନା ଚାଲୁଥିଲା ବେଳେ, ଇଞ୍ଜିନ୍‌ରୁ ଧୂଆଁ ବାହାରିଲା ।" ଏହା କହି ଶିକ୍ଷକ ପଚାରିଲେ "ମଟର ଗାଡ଼ି ଓ ରେଳ ଇଞ୍ଜିନ୍‌ରୁ ଧୂଆଁ ବାହାରିବା ବେଳେ, ତୁମେ ମାନେ ତ ଦେଖିଥିବ ?

ମଧୁ ସାଙ୍ଗେ ସାଙ୍ଗେ ଉଠି ପଡ଼ି କହିଲା, "ସେ ଧୂଆଁ ମୋତେ ବହୁତ ଖରାପ ଲାଗେ । ଧୂଆଁରେ ବହୁତ ମଇଳା ଗୁଣ୍ଡ ଥାଏ । ତାହା ଆଖିରେ ପଶିଲେ ବହୁତ କଷ୍ଟ ହୁଏ ।"

ଶିକ୍ଷକ କହିଲେ, "ଏହାର କାରଣ ଅଛି । କାରଖାନାର ଧୂଆଁ ପବନରେ ମିଶିଲା । ପବନକୁ ଦୂଷିତ କଲା । ଧୂଆଁରେ ଥିବା ଜୀବାଣୁ, ପବନରେ ମିଶିଲେ । ଏହି ପବନକୁ ଗାଁ ଆଁ ବାଲା, ନିଶ୍ୱାସରେ ଦେହ ଭିତରକୁ ନେଲେ । ଫଳରେ ସେମାନଙ୍କ ମଧ୍ୟରୁ ଅନେକ ବସନ୍ତ, ହାଡଫୁଟି, ମିଳମିଳା ପ୍ରଭୃତି ରୋଗରେ ପଡ଼ିଲେ ।"

ମଧୁ କହିଲା, "ମୁଁ ଜାଣିଛି । ଏ ସବୁ ରୋଗ ବାୟୁରେ ଭାସୁଥିବା ଜୀବାଣୁ ଯୋଗେ ହୁଏ ।"

ଶିକ୍ଷକ କହିଲେ, "ହଁ । ତାହାହିଁ ହେଲା ପରିବେଶର କଥା । ପରିବେଶରେ ଜଳ ଓ ବାୟୁ ଦୁଇଟି ପ୍ରଧାନ କଥା ।

Digitized by PPRACHIN, SOA

ଏହି ଦୁଇଟି ପରିଷ୍କାର ନ ରହିଲେ ପରିବେଶ ଦୂଷିତ ହୁଏ ।
ଏହି ପରିବେଶ ଆମ ଶରୀରକୁ ରୁଗ୍‌ଣ କରେ ।"

ଟିକିଏ ରହି ଶିକ୍ଷକ କହିଲେ, "କାରଖାନା ନିକଟରେ ପାଣି ଓ ପବନ ଦୂଷିତ ହେବା ଦ୍ୱାରା ଗାଁ ଆ ଲୋକେ ଅନେକ ରୋଗ ଭୋଗିଲେ । ସେଥିପାଇଁ କାରଖାନାକୁ ବନ୍ଦ କରି ଦିଆ ଗଲା "

ମଧୁ କହିଲା, କାରଖାନା ବନ୍ଦ ହେବାର ଏ ସବୁ କାରଣ ତ ଆମେ ଜାଣି ନ ଥିଲୁ ।"

ଶିକ୍ଷକ କହିଲେ ଏହାହିଁ ହେଉଛି ପରିବେଶର କଥା । ତୁମେ ମାନେ ବଡ଼ ହେଲେ ପରିବେଶ ବିଷୟରେ ଅନେକ କଥା ଜାଣିବ ।"

---

Approved by the Director, Mass Education, Orissa,
Bhubaneswar

Digitized by PPRACHIN, SOA